# ଉପହାର ।

"ବୃଷ୍ୟ-ହଂସ—କେଳି-ସରଃ"-ଦେବଦୁର୍ଗ-ନାମ
ପବିତ୍ର ଉତ୍କଳ ଧାମେ 'ବାଣୀପୀଠ' ରୂପେ
କୀର୍ତ୍ତିତ ହୋଇଛି ଲଭି ସୁଉଚ୍ଚ-ପ୍ରତିଷ୍ଠା ;
ବାଗ୍‌ଦେବୀ-ପ୍ରସାଦ ଅଶେଷ ଆବାଲ୍ୟ ମୋହର
ପଦାର୍ପଣ ଦିନୁ ଏଥି, ଦଶବର୍ଷାବଧି
ସୁଦୀର୍ଘ-ପ୍ରବାସ-ତାପ ନିବାରିଲେ ଯେତେ
ଯେଉଁ ପ୍ରିୟ ବନ୍ଧୁବର୍ଗ, ସ୍ନେହ ସୁଧାସେକେ,
ଜାଣି ନପାରିଲି ପୁଣି ଅମୀୟ ଛାର
ବିଚ୍ଛେଦ-ବେଦନା ଲଭି ଯେଉଁ ସଙ୍ଗସୁଖ ;
ବିଦ୍ୟାଳୟେ ସହପାଠୀ, ବର୍ତ୍ତମାନ ସୁଦ୍ଧା
ଥିଲେ ହେଁ ବହୁ ବିଭିନ୍ନ କର୍ମବ୍ୟପଦେଶ
ସତ୍ତ୍ୱ ନୁହେ ଅଦର୍ଶନ ଅବକାଶବେଳେ
ଆହାରେ, ବିହାରେ ଖେଳ ଉତ୍ଫୁଲ୍ଲ ମାତି
ଦେଉଥିଇଁ ନିର୍ମଳାନନ୍ଦ ଯେଉଁ ନିତ୍ୟସଙ୍ଗେ
ଚିରଶୁଭକାଂକ୍ଷୀ ମୋର ପ୍ରିୟତମବର୍ଗ
ସୁଖେ ଦୁଃଖେ ଚିରସଖା, ଅଭିନ୍ନ ହୃଦୟ
ସେହି ପ୍ରିୟଜନ-କରେ ଅତିପ୍ରେମାଦରେ
ଅର୍ପିଲି 'ବିକାଶ' ମୋର ପ୍ରୀତି-ସ୍ମୃତି-ଚିହ୍ନ

ପ୍ରଣେତା

# ଭୂମିକା ।

ମୋରଗ୍ରନ୍ଥଜୀବନାବଧି କବିତାପ୍ରତି ସମଧିକ ସ୍ପୃହା ଯୋଗୁଁ ବିଭିନ୍ନ ସମୟରେ ମୋରକ୍ଷୁଦ୍ରହୃଦୟରେ ଉଦିତ ଭାବଗୁଡ଼ିକ କବିତାକାରରେ ଲିପିବଦ୍ଧକରି ତଥା-ସମୟରେ 'ସ୍ୱଦେଶିଣୀ' ପତ୍ରିକାରେ ପ୍ରକାଶ କରି ଆସୁଥିଲି । ବର୍ତ୍ତମାନ ମୋର କେତେକ ଶ୍ରଦ୍ଧାସ୍ପଦବନ୍ଧୁ ଉକ୍ତକବିତା ଗୁଡ଼ାକୁ ଏକତ୍ରିତକରି ପୁସ୍ତକାକୃତିରେ ପ୍ରକାଶ କରିବାକୁ ସସ୍ନେହ ଉପଦେଶ ଓ ଉତ୍ସାହ ପ୍ରଦାନ କରିବାରୁ କ୍ଷୁଦ୍ର କବିତା ସମୂହର ସମଷ୍ଟି-'ବିକାଶ' ଆଜି ପାଠକ ମାନଙ୍କ ସମ୍ମୁଖରେ ଉପସ୍ଥାପିତ ହେଲା ।

ଅଧୁନାତନ ପାଠକ ଶ୍ରେଣୀରେ 'ଉପଧା'ପ୍ରତି ସାଧାରଣଙ୍କର ଆଦର ନ୍ୟୁନାଧିକ ଉପଲବ୍ଧି କରି ଉପଧାପ୍ରତି ମୁଁ ସମୁଚିତ ଦୃଷ୍ଟି ଦେଇନାହିଁ , ଏହା ସମୀଚୀନକି ନା ସାଧାରଣଙ୍କର ବିବେଚ୍ୟ । ଇତି ।

ବିଜୟାଦଶମୀ
ସନ୍ ୧୩୨୪ ସାଲ

ପ୍ରାର୍ଥୀ ଶ୍ରୀଦିବ୍ୟସିଂହଦେବବର୍ମ୍ମା
ଶିକ୍ଷକ ସ୍ୱର୍ଣ୍ଣକୁମାର ହାଇସ୍କୁଲ୍
ଦେବଦୁର୍ଗ—ବାମଣ୍ଡା

## ସୂଚୀପତ୍ର ।

# ବିକାଶ ।

## ସାହିତ୍ୟସେବା ।

(୧)

କି ଅମୂଲ୍ୟ ସୁଖ ଅଛି ସାହିତ୍ୟସେବନେ ,
କି ଅବା ଉପମା ତାର ଏ ମର୍ତ୍ତ୍ୟ ଭୁବନେ
ଭାଗ୍ୟଦେବୀ ପ୍ରସାଦରେ
ଲଭିଥାନ୍ତି ଯେଉଁ ନରେ
ଅମର୍ତ୍ତ୍ୟ ଉପ୍ତିତ ସେହି ସ୍ୱର୍ଗୀୟ ରତନେ ,
ଧନ୍ୟ ସେହି ଧନ୍ୟ ତାଙ୍କ ସାଧନା ଜୀବନେ ।

(୨)

ଅନନ୍ତ ବିଶ୍ୱ, ବିଧାତା ତୁମ୍ଭ ଦୟାମୟ ;
ଅଧମ ମୂପଶୀ ପ୍ରତି ହୋଇ ସହୃଦୟ ,
ଫୁଟିଅଛନ୍ତି ସତର୍କେ
ବିଷମୟ ଭବ-ବୃକ୍ଷେ,
ଦୁଃଖ ବିନାଶକ ସୁଧାମୟ ଫଳଦ୍ୱୟ ,
ଏକ ସାଧୁସଙ୍ଗ ଅନ କାବ୍ୟ ଭବମୟ ।

(୩)

ସତ୍ୟ, ଅଛ ମହାସତ୍ୟ ଏସାରବଚନ
ବୁଝିଇଲେ ଯେଉଁ ଜାତି ହୋଇ ଉନ୍ନମନ
ବସି ସାରସ୍ୱତ ପୀଠେ
ଢରେ ପୂଜା ଏକମନେ
ଅତୁଳସୁଖବରଦା ଶାରଦା-ଚରଣ
ଅଜ୍ଞାନ ଅନ୍ଧାରେ ଯାହା ଜ୍ଞାନର ତପନ ।

[୪]

ସାହିତ୍ୟ କେବଳ ନୁହେ ସୁଖଉତ୍ପାଦାନ
ସମନ୍ୱିତ ତହିଁ ସଦା ଜାତୀୟଜୀବନ
ତାହାର ଉନ୍ନତଭାବ
ହୁଏ ତହିଁ ଅନୁଭବ
ଅଟଇ ସେ ସମାଜର ସ୍ୱଚ୍ଛ ଦରପଣ ;
ସାହିତ୍ୟ ବିହୀନ ଜାତି ସତତ ନଗଣ୍ୟ ।

(୫)

ସେହି ଲୁପ୍ତପ୍ରାୟଧନ ଉଦ୍ଧାର କରଣେ
ଦେଶଭକ୍ତ ମନପ୍ରାଣ ଉତ୍କଳସନ୍ତାନେ ।
ସେଥିଲେବ ଅନୁପ୍ରାଣିତ
ଅଧମ ଉଦ୍ୟମ ସୁତ
ବଳାଇଛୁ ଚିତ୍ତ ମାତଃ ! ତୋପଦ ସେବନେ ,
ଦିଅ ବଳ ମା ଭାରତି ! ଏକ୍ଷୁଦ୍ର ମନେ ।

# ଉଦ୍ଯୋଗ ।

କର୍ମମୟ ସଂସାର ଏ ସୁଖଦୁଃଖ ପୂର୍ଣ୍ଣ ,
କର୍ମବଳେ ଯୁଗେ ଯୁଗେ ରହିଛନ୍ତି ଅକ୍ଷୁର୍ଣ୍ଣ ।
ଉଦ୍ଯୋଗୀ କର୍ମୀଗଣରେ କର୍ମକ୍ଷେତ୍ରେ ପଶି ,
କର୍ତ୍ତବ୍ୟ ସାଧନେ ସଦା ହୁଅନ୍ତି ପ୍ରୟାସୀ ।
କାପୁରୁଷ ଅଳସୁଆ ଅଜ୍ଞ ଯେତେ ଜନ
ଦୈବବଶି ଜାଣିବେ ଦାରୁ ଥାନ୍ତି କର ।
ନ ବୁଝନ୍ତି ମୂଢ଼େ କେବେ "ସୁପ୍ତସିଂହମୁଖେ
ପଶେନାହିଁ ମୃଗ ଆସି ନିଜ ଇଚ୍ଛାସୁଖେ ।"
ଗୁରୁପ୍ରାୟେ ଦିଅନ୍ତି ଯେ ଶିକ୍ଷା ଅନ୍ୟଜନେ ,
ଭାଗ୍ୟକୁ ଆଦରି ସଦା ରହ ତୁଷ୍ଟମନେ ।
ତେ ଅବା ଦିଅନ୍ତି ଶିକ୍ଷା ଉନ୍ମତ୍ତଜନପ୍ରାୟେ
ଅଳିଆ ଦୃଷ୍ଟାନ୍ତ ଦେଇ ମାନବ ହୃଦୟେ
ନ ଅଛଇ ଶ୍ରମଭୂମେ ଉଚ୍ଚହରିନାମ
ଈଶ୍ୱରେ ଦୃଢ଼ତା ରଖ ହେବ ସିଦ୍ଧକାମ ।
ଶୁଣି ଏହି ଉପଦେଶ କୁକର୍ମୀ ମାନବେ
ଆଳସ୍ୟ ତରଙ୍ଗେ ବୁଡ଼ି ରହନ୍ତି ନୀରବେ ।
ବିପଦ ଦୁର୍ଦ୍ଦିନ-ତମ ଅଲକ୍ଷିତେ ଆସି
ସୁଖ-ଶଶୀ ତାହାଙ୍କର ବେଗେ ଯାଏ ଗ୍ରାସି ।
ଅନ୍ନାଭାବେ ବସ୍ତ୍ରାଭାବେ ରୋଗ ଅତ୍ୟାଚାରେ
ହା ତ୍ରସ୍ତଜନ୍ମ ସୁଖହୀନ ନିନ୍ଦନ୍ତି ଭାଗ୍ୟରେ !

ଉଦ୍ୟୋଗେ ସୁଖ-ରତନ ପ୍ରାପଣନାସ୍ତୁ
ଅଳସ୍ୟରେ ହି ପ୍ରାଣ ଚିରହାହାମସ୍ତୁ ।
ଏହା ଜାଣି କର୍ତ୍ତବ୍ୟରେ ନହୋଇ ବିମୁଖ ,
ଦେଖିବ ଉଠ! କର୍ମବଳେ ଭାଗ୍ୟଦେବୀମୁଖ ।

## ପ୍ରାଭାତିକ ପ୍ରାର୍ଥନା ।

ଏ ଶୁଭପ୍ରଭାତେ ପ୍ରଭୋ! ଢାଳ ତବ ସ୍ୱମ
ଦିବ୍ୟ ବଚନ ଶୁଭେ ଚିତ୍ତାକାଶେ ମମ ।
ତବ କରସ୍ପର୍ଶେ ବିଭାବରୀତମ ସମ
ନିଦୂରିତ ହେଉ ମୋର ପାପଦୁଃଖ-ତମ ।
ଉଷାଗମେ ଉଜ୍ଜ୍ୱଳିତ ଚକ୍ରବାଳ ପରି
ଶୋଭୁ ମୋ ହୃଦାକାଶ ଦିବ୍ୟତେଜେ ପୂରି
ପ୍ରଭାକରକରେ ଅନ୍ଧଉଲୂକ ପରି
ଦୁଷ୍ଟ ବୃତ୍ତିଚୟ ମୋର ଯାଉ ଅପସରି ।
ବଟରମ୍ଭ ସୁପ୍ରଭାତେ ଯଥା ପକ୍ଷୀଦଳ
ସୁବୁଦ୍ଧି ହେଉନେ ତଥା ମୋହୃଦେ ପ୍ରବଳ ।
ରବିକରେ ପ୍ରଫୁଲ୍ଲିତେ ଯଥା କମଳିନୀ
ହୋଇନ ବନ୍ଧୁ ମୋର ମାନସ—ନଳିନୀ ।
ଦେଉ ପ୍ରଭୋ ଦୟାମୟ ଏ ମୋ ବକ୍ଷୀଜନ
ନେତ୍ର ସୁଶୀତଳ ଯଥା ପ୍ରଭାତ-ପବନ ,
ପ୍ରଭାତ ବିହଙ୍ଗ ତୁଲ୍ୟ ପ୍ରାଣ—ବିହଙ୍ଗମ

କରୁ ସଦାପ୍ରଭୋ ସଙ୍କୀର୍ତ୍ତନ ତବ ନାମ ।
ପୂର୍ଣ୍ଣକର ଇଚ୍ଛାମୋର କୃପାଅକୂପାର
କାତରେ ମାଗଇଁ ଭିକ୍ଷା ଯୋଡ଼ିବେନକର ।

## ଶୈଶବ ସ୍ମୃତି ।

'ସ୍ମୃତି' ଶବ୍ଦ ଗୋଟି କେଡ଼େମନୋହର
ଦୂର କରଇ ସେ ଦୁଃଖ ହୃଦୟର
ସ୍ମୃତି ! ତୋର ମହୀୟସୀ କୃପାବଳେ
କେତେ ଶୃଙ୍ଖଳ ହୁଟେ ପ୍ରତିପଳେ ।
ମନେ ପଡ଼େଯେବେ ମୋ ପ୍ରାଣ ଜନନୀ
କରେଛି ଚନ୍ଦ୍ରମା ଧବଳ ରଜନୀ
ମହାଦରେ ମୋତେ ଘେନି ଣ କୋଳରେ
କହୁଥିଲେ କଥା ଆନନ୍ଦ ଭୋଳରେ—
"ଅରେ ଚନ୍ଦ୍ର ମାମୁଁ ଶରଦ-ଶଶି
ମୋହାତ୍ତରେ ହାତରେ ପଡ଼ରେ ଖସି"
ଅନୁକରି ତାହା ଦରୋଚ୍ଚ ବଚନେ
କହିଲେ ମୁଁ, ମାତା ବ ଆନନ୍ଦମନେ
ହଅନ୍ତି କେସନେ ମୋର ସନ୍ତୁଗଣେ
ସସ୍ନେହେ ଚୁମ୍ବନ ଅତି ଘନେ ଘନେ ।
ରାଗବଶେ ଯେବେ ନଖାଏଁ ମୁଁ ଭାତ
ଜାଣଜାଉ ମୋତେ ଧରି ଦୁଧଭାତ
ବୁଲି ବୁଲି ଦାଣ୍ଡେ କରନ୍ତି ଭୋଜନ

ଖେଳରେ ଭୁଲରେ କେତେ ଭଣ୍ଡାଇଣ ।
ଖେଳୁଥିଲୁ ଯେବେ ମୋ କ୍ଷୁଦ୍ର ପଲ୍ଲୀରେ
ବାଲ୍ୟସଖା ବାଲ୍ୟସଖୀଙ୍କ ମେଳରେ
ଧୂଳିଘର , ଧୂଳିଭାତ ତରକାରି
ବର-କନ୍ୟା ସାଜି କେତେ ବେଶ ବକର ।
ପ୍ରଦୋଷେ ଯେବାଳେ ଧରେ ଜହ୍ନୀଫୁଲ
ବୁଲୁଁ ଘରେଘରେ ଦୋହେ ହର୍ଷେ ଉତ୍ଫୁଲ୍ଲ
"ଜହ୍ନୀଫୁଲ ଠୋଠା, ଭଗମୁଠାଏ ଦଅ
ନଦେଲେ ତୋର୍ ଘରେ ହେବ ଖେଣ୍ଡିଆ ପୁଅ ।"
ଏଭଳି ଦେଖାଇ ମାଗି ଭିକ୍ଷାଦାନ
ଲଭି ତାହା କରୁଁ ଏକତ୍ରେ ଭୋଜନ ।
ଅହାଃ ସୁସ୍ୱାଦ ସେ ଅମୃତଭକ୍ଷ୍ୟ ;
କି ଖାଦ୍ୟ ସେ ଖାଦ୍ୟ ସଙ୍ଗେ ନୈବଲକ୍ଷ୍ୟ ?
ପ୍ରାଣର ଭଗିନୀ ସଙ୍ଗେ ଶିଶୁଗଣ
ଭ୍ରମି ଫୁଲବନ ଗ୍ରାମ ଉପବନ
ଭ୍ରମୁଥିଲୁଁ ଯେବେ ଆନନ୍ଦିତମନେ
ସେହି ରମ୍ୟଦୃଶ୍ୟ ପଡେ ଏବେମନେ ।
ମନେ ପଡେ ଯେବେ ମୋ ପ୍ରିୟଜନଙ୍କ
ଦଅନ୍ତୁ ଚୁମ୍ବନ ଲଭିଣ ଦୁଲଳ ।
ହେଲେ ମୁଁ ଅଛଟ କେତେ ଠକକାରେ
ତୋଷୁଥିଲେ ମୋତେ [illegible] ପ୍ରୀତିରେ !
କେତେ ସୁଖମୟ ଶୈଶବଜୀବନ !

ସ୍ମୃତି ତାହା ଏବେ ଘାଣ୍ଟି ହୃଦୟମନ ।
ଚିରକାଳରେ ଥିବ ଅଚମ୍ବିତେ
ହରିନେଲା ତାହାସଙ୍ଗେ ଅଲକ୍ଷିତେ
ବାଲ୍ୟ ସଖାମେଳ ବାଲ୍ୟ ଖେଳାଲୀଳା ;
ବାଲ୍ୟ ସୁଖାମୋଦ ସବୁ ପାଶୋରିଦେଲା ।
ପ୍ରାଣ ଅହ୍ଲାଦକ ସେଭବ ଭାବନା
ଏବେ ମୋହୃଦୟେ କରୁ ଉଦ୍ଦୀପନା
ଜୀବନ ମୁକୁର ସ୍ମୃତି ସେଥିପାଇଁ
ହୃଦକୁଞ୍ଜେ ଚିତା ତୋଠାରେ ଅର୍ପଇଁ ।

## ଆଶାର ଛଳନା ।

ଆଶା କୁଞ୍ଜେ ଫୁଟେ କେତେ ଫୁଲ
　　ମୋହୃଦ କାନନେ ,
ମୃଦୁ ସଖା ମଳୟ ମରୁତ
　　(ଚିନ୍ତା) ସଞ୍ଚଇ ଯତନେ
ଫୁଲ୍ଲକାଏ ଚଉଦିଗ ଅହା !
　　ସେଦିବ୍ୟ ସୌରଭେ
ଫୁଲ୍ଲିତ ପ୍ରାଣ ମନ ଲଭି
　　ସେ ଦିବ୍ୟବିଭବେ ।
[illegible] —
　　—[illegible]

ଅନୁଭବେଁ ମୁହିଁ ସ୍ୱରଗର
ଦିବ୍ୟାନନ୍ଦ ମନେ ।
ଏ ସୁଖ କାରଣ ବିନା ପ୍ରଭୋ
ତବପଦପଦ୍ମ ,
ସୁରତାହା ଭକ୍ତିଭରେ ହୃଦ
ହୁଅଇ ଆନନ୍ଦ ।
ବଳାଏଁ ମାନସେ ଦେବେଶ ନାଥ !
ମହାପ୍ରସାଦରେ ,
ପୂଜିବାକୁ ସେ ଦିବ୍ୟ କୁସୁମେ
ସେ ଦିବ୍ୟପଦ୍ମରେ ।
ଇନ୍ଦ୍ର ଚନ୍ଦ୍ର ପ୍ରମୁଖ ସୀ କର-
ଶ୍ରିଣ ମାନେ ତାହା
ବୃନ୍ଦ୍ରଚ୍ଚୁତ ପୁଣି ବାଞ୍ଛନ
ବନ୍ଦନର ଆହା ! !
କିମ୍ବା ମାନବଙ୍କେ ହାୟ ! ସେହି
ସ୍ୱର୍ଗୀୟ ସୁଷମା
ଉଭିଯାଏ କେଉଁ ଆଡ଼େ ଯେନି
ଇଶ୍ୱରଙ୍କ ମହିମା ।
କ ବୋଲ ପୂଜିବ ଦେବ ! ଏହି
ପର୍ଯ୍ୟୁଷିତଫୁଲେ
ସ୍ୱର୍ଗ ପାରିଜାତେ ପୂଜ୍ୟ ସେହି
ଚରଣ ଯୁଗଳେ ?

ନମ୍ରା ମୁହିଁ ଶ୍ରୀପଦସେବନେ
ନୁହଇଁ ଭାଜନ
ତେଣୁ ଦେଖାଅ ଅଗ୍ରତେ ସଦା
ମୋହ ପ୍ରଲୋଭନ ।
ନୈରାଶ୍ୟ ହୃଦୟେ ଦେବେ କିପାଁ
ଆଶାର ଛଳନା
ଜଗାଅ ଯେ ହୃଦୟେଶ ! କର
କିପାଁ ଏ ବଞ୍ଚନା ।

---

## ଆକାଶ ପ୍ରତି ।

ହେ ବ୍ୟୋମମଣ୍ଡଳ ! ତୁମ୍ଭ କାହାର ବିଧାନେ
ନିର୍ମାଣ ବିପୁଳ କାୟ ଏରୂପ ଭୁବନେ ,
ଅନନ୍ତ ଅଦୃଶ୍ୟ ରୂପେ ବିରାଜ ସତତ
ବିମୋହିତ ତୋ ଦର୍ଶନେ ଭାବୁକନିକର ।
କେ କଳି ପାରିବ ତୋର ଅଦ୍ଭୁତ କାନ୍ତି
ପ୍ରତ୍ୟୁଷ ହେଉ ସେଦିଗେ ଯେଣେଦିଏ ରଶ୍ମି ।
ସୁନ୍ଦର ତାରକାମାଳେ ହୋଇଣ ଭୂଷିତ ,
ହରୁଥାଅ କ୍ଷଣେ ତୁମ୍ଭେ ଜଗତର ଚିତ୍ତ ।
ଉଜ୍ଜ୍ୱଳ ନକ୍ଷତ୍ର ଯନ୍ତ୍ର ଥାଇ ତୋ ଅଙ୍କରେ
ସ୍ୱର୍ଗୀୟ କୁସୁମ ଭ୍ରାନ୍ତି ଜନ୍ମାଏ ମନରେ ।
ତୋ ମସ୍ତକେ ଥାଇ ଚନ୍ଦ୍ର ମଣି ସ୍ୱରୂପରେ

ଝଙ୍କାରଇ ସୁଧା-ଜାଲ ଏ ହୃତ୍ତନ୍ତ୍ରୀ ମଧ୍ୟରେ ।
ପୁଣି ଅନ୍ୟକ୍ଷଣେ ଧରି ଦୃଶ୍ୟ ଅଦ୍ଭୁତ
ମୋହୁଅଛ ମୋର ଚକ୍ଷୁ ବର୍ଣ୍ଣେ ନେଇଅଛ ।
ଶ୍ୱେତ, ପୀତ ନୀଳ ଆଦି ବିବିଧ ରଙ୍ଗରେ
ରଞ୍ଜିତ ହୋ ଚନ୍ଦ୍ର ସଙ୍ଗେ କି ତୁଲ୍ୟ ସୁଷମାରେ ?
ଜାଣୁଅଛି ମୁହିଁ ନର ! ଅନ୍ତ ସହିତ
ପ୍ରକୃତ ଉତ୍ତରେ ତୋଷ ମୋର ମନୋରଥ
କେ ଦେଇଅଛି ତୋତେ ଏହି ବିଶ୍ୱେ ଅଦ୍ଭୁତ
କେ ପୁଣି ଚିହ୍ନିଛି ତୋତେ କରି ଯତ୍ନ ଅତି ,
ଏମନ ଛବି ସ୍ୱରୂପେ ; ସେହି ଚିହ୍ନକରେ
ଚିହ୍ନିବା ବାସନା ମୋର ସତତ ଅନ୍ତରେ ।

## ଲଭିବି କି ପୁଣ ?

(୧)

ଲଭିବ କିପରି ସେହି ମୋକ୍ଷଜୀବନ-ତରୀ ?
ଦୁସ୍ତର ସଂସାର-ସିନ୍ଧୁ ତରିବି ଅକ୍ଳେଶ
ଝଡ଼-ବେଗ-ତୋଳି ଯହିଁ ନହିରୂପଣୀ
ଅବହେଳେ ହରାଇବ ଭୟଙ୍କର ବେଶେ ।

(୨)

ଲଭିବି କିଧରି ସେହି ମହାସ୍ଫୂର୍ତ୍ତି ଶକ୍ତି ?
ଯେଉଁଶକ୍ତି ପ୍ରଭାବେ ମୁଁ ହୋଇ ବଳୀୟାନ

କାମ-କ୍ରୋଧ-ଲୋଭ-ମୋହ ଆଦି ଯେ ଉଦ୍ଧତ
ଇଚ୍ଛା ଅନୁରୂପେ ତାଙ୍କୁ କରିବ ଶାସନ ।

(୩)

ଲଭିବି କିପରି ସେହି ପ୍ରେମ-ପାରାବାର ?
ମୋପ୍ରାଣ-ପ୍ରେମ-ତଟିନୀ ଧାଏଁ ଯାରପ୍ରତି
ଯେପ୍ରେମ ସାଗରେ ମଗ୍ନ ନିଖିଳ ସଦାଇ
ଯହିଁରେହିଁ ହେବ ପୂତ ମୁହିଁ ପଦ ଛି ।

(୪)

ଲଭିବି କିପରି ସେହି ପରମାତ୍ମାଜ୍ଞାନ ?
ଯେଜ୍ଞାନ-କୁଠାରେ ମୁହିଁ ଛେଦିବି ଅକ୍ଳେଶେ
ଶୋକ-ମୋହ ମାୟାରୂପୀ ସଂସାରବନ୍ଧନ
ତତ୍ପରେ ମିଳିବି ଯାଇ ବ୍ରହ୍ମପଦଦେଶେ ।

(୫)

ଲଭିବି କିପରି ପ୍ରଭୋ ! ସେହି ପଦ୍ମପାଦେ ?
ଯାହେଁକି ଲଭି ପାଇବ ବୈକୁଣ୍ଠରେ ସ୍ଥାନ
ଜାଣେନାହିଁ ଭକ୍ତିମାର୍ଗ-ତେଣୁ ହେ ବିଷାଦେ
ଅନ୍ତରଙ୍ଗ ପଦ୍ମପୁଙ୍ଗ କରେଁ ଅନୁଷ୍ଠାନ ।

-*—※—*-

## ଅଭାଗିନୀ ।

ପ୍ରଦୋଷ ସମୀର		ବହେ ଧୀର ଧୀର
କିଏରେ ବାଳିକା ମଳିନ ବେଶେ ,

ଅଲେକ୍ଷି ଗୌରବେ ମଣ୍ଡି ଥିଲୁ ଅଙ୍କି
ଆନନ୍ଦ ପୂର୍ତ୍ତିଏ ଉତ୍ସବ ଦେଶେ ।
କୋମଳ ବପୁରେ ଅମ୍ଳାନାଙ୍ଗ ତୋର
ଶୈଶବ ସୁଲଭ ବେଶଭୂଷଣେ ,
ସୁରମ୍ୟ ଚିକୁର ବେଣୀ ଶୂନ୍ୟ ହୋଇ
ଏବେ କେତେ କିମ୍ପା ଦୋଳେ ପବନେ ?
କେଉଁ ଅଭାଗିନୀ ଜନନୀ ତୋହର
ତୋର ଏ ଦୁରନ୍ତ ଲାବଣ୍ୟମୟ
ମଣି ମୁକୁତାର ବହୁବିଧ ଭୂଷଣେ
କରନାହିଁ କିପାଁ ଭୂଷଣମୟ ?
ଦରିଦ୍ର ଯଦ୍ୟପି ଧନନାହିଁ ପିତା
ଅଛଇ ଦେଶରେ ବାଡି ବଗିଚ୍ଚ ,
ଫୁଲଦଳ ଯୋଗେ ରଚି ପାରନ୍ତବତ
ଭୂଷଣ ଯାହାର ଯେମନ୍ତ ଇଚ୍ଛା ।
ଫୁଲ ଯୋଗେ ମାଳା ଫୁଲ ଯୋଗେ ବଳା
ରଚି ସଯତନେ ନୋହୁ ଭୂଷିତ
ମନୋହର ଗ୍ରୀବା କମନୀୟ କର-
ପ୍ରଦେଶ କିପାଇଁ ଛନ୍ଦିଛୁ ରଙ୍କ ?
ମୁହୁ ଅବନତା ପଡ଼ି ଲୁଣ୍ଠି ଦୟା
କି ଏରୁଛୁ ? ଶୁଣି ମୋର ଏକଥା ,
କି ହେତୁ ବସନେ ସଜଳ ନୟନେ
ଲଜ୍ଜାଭରେ ଛଳେ ପୋଛୁଛୁ ମଥା ?

କି କଷ୍ଟରୁ ଅଉ    ଜାଣିଲ ଜାଣିଲ
  ସୀମନ୍ତେ ତୋହର ନାହିଁ ସିନ୍ଦୂର ,
ବୃଥା ଜନ୍ମ ତୋର    ଦୁଃଖେ ସହିବାକୁ
  ଗଢ଼ିଅଛୁ ତୋତେ ବଡ଼ ନିଷ୍ଠୁର ।
ଓହୋ! କି ଯାତନା    ଅନୁଭବେ ପ୍ରାଣ
  କେମନ୍ତେ ସହିବ ଅବଳା ବାଳା
କୋମଳ ପରାଣେ    ମରଣୁ ଅଧିକ
  ସୁତୀବ୍ର ବୈଧବ୍ୟ-ବିଷମ ଜ୍ୱାଳା !
ବିଧବା ଶବଦ    ବିଦାରଇ ହୃଦ
  କି ଉଦ୍ଦେଶ୍ୟ ଅଛେ ଦୟାଳୁ ବିଧି!
ମାନବ ଜଗତେ    ସୃଜିଅଛୁ ଘୋର-
  ଦୁଃଖଦ ବୈଧବ୍ୟ କଠୋର ବିଧି ? *

## ଆଶା—ପଥେ ।

(୧)

ଅବିରତ ଆଶା-ପଥେ ଚାହିଁ
  ନ ଭେଟିଲି ଦେବ ପରାଣ ସାଇଁ !
କି ଅଜ୍ଞାତ ଦେଶେ ନାଥ!    ବସିଛ ଅଛ ସଂଗୋପେ
  ପଦାଶ୍ରିତ ଦାସେ ଏତେ ଛଳନା କିପାଇଁ ?

(୨)

ତୁମ୍ଭେ ପରା ପରମ କାରଣ
ଭକ୍ତି ତବ ପଙ୍କଜ ଚରଣ

* ଅବିଭକ୍ତ ବଙ୍ଗେ ଲିଖିତ ।

ନ ମେଣ୍ଟିଲା ଆଶା ମୋର    ବର୍ଷା, କୃପା ଅକୂପାର
କେଉଁ ଅପରାଧେ କିବା ମୋର ଉପେକ୍ଷା ?

(୩)

କେମନ୍ତେ ବା ବୋଲିବ ଏସନ
ବୃଥା ନୁହେ ମାନବ ସୃଜନ
ତବ ଇଚ୍ଛାପୂର୍ତ୍ତି ଅର୍ଥେ    ଆସେ ନର ଏ ଜଗତେ
ଫେରି ଯାଏ କରି ତବ ଇଚ୍ଛା ସମ୍ପାଦନ ।

(୪)

କିନ୍ତୁ ନାଥ ଭାଗ୍ୟଦୋଷେ ଦାସ
ଭୁଲି ତବ ମଙ୍ଗଳ ଆଦେଶ
ହରାଇ ସେ ଦିବ୍ୟଜ୍ଞାନ    ନେ ସେବା ଢୋଇହୀନ
ପଶୁର ସମାନ ହୋଇ ସହେ କେତେ କ୍ଲେଶ ।

(୫)

ଦୁର୍ବଳ ମୋ ଅଜ୍ଞାନ ହୃଦୟ
ଅବହେଳେ କୁବାସନା ଚୟ
ସ୍ପର୍ଶ ବାଇ ହୃଦଦେଶ    ଘଟାଇ ସର୍ବନାଶ
କୋମଳ ପରାଣ ସଦା କଲେ ଦୁଃଖମୟ ।

(୬)

ଜ୍ଞାନମୟ! ଦିଅ ସଦଜ୍ଞାନ
ଦେବେ ମନେ କର ବଳଦାନ
ତୋ ମଙ୍ଗଳ ଉଦ୍ଦେଶ୍ୟ    ସାଧିବେ ହେଲେ ଅବଶ୍ୟ
ଏହିମାତ୍ର ତବ ପଦେ ମମ ଆକିଞ୍ଚନ ।

# ବନପଥେ ସାବିତ୍ରୀ ଓ ସତ୍ୟବାନ

(ଚିତ୍ର ଦର୍ଶନେ)

କେଉଁ ଦୃଶ୍ୟ ଦେଖି ହୃଦେ ? ଦିବା ଅପଗମେ
ଘେନି ସଙ୍ଗେ ପ୍ରେୟ ପତି, ଅଦ୍ଭୁତ ନିର୍ମିତ-
କଠୋର କୁଠାର ସ୍କନ୍ଧେ ତପସ୍ୱୀବେଶେ
ସାନନ୍ଦ ହୃଦୟେ ଅଛ ଗହନ ବିପିନେ
ହୁଅ ଅଗ୍ରସର ଦେବ ! ନିଶ୍ଚିନ୍ତ ମାନସେ ;
କ୍ଷୀର ନବନୀତ ଅବି ସୁସ୍ନିଗ୍ଧ ଅହାର୍ଯ୍ୟ
ପୁଷ୍ପ ସୁକୋମଳ କାନ୍ତ ଅଙ୍ଗଲତା ଯାର ,
ଦୁଗ୍ଧଫେନନିଭ ତଳ୍ପେ ସୁଖେ ନିଦ୍ରା ଯାଏ ,
ନିରନ୍ତର ସେବିତ ଯେହୁ ଅନୁଯାୟୀବର୍ଗେ
କଷ୍ଟପ୍ରାଣ ଦୀର୍ଘପଥ ନ୍ୟୁଅଙ୍ଗ ଶରୀର
ଅଚଞ୍ଚଳ ନିରନ୍ତର ସୁକଠିନ ଅଛି
ବାସ୍ପଜଳାବେଶ ତାରେ ବିଶେଷ କି ଶୋଭନ ?
ଧନ୍ୟରେ ନିବୃତ୍ତି ଧନ୍ୟ ତୋର ଚୂଡ଼ାମଣି
କି ଅବା ଅସାଧ୍ୟ ତୋର ଚିନ୍ତିଲେ ବନେ
ଅଗାଧ ସଲିଳ ମଧ୍ୟେ ଦଳ ମାନଙ୍କେ
ନିର୍ମିଶ୍ର ତୁ ମହାଦେବୀ, ଇଚ୍ଛାବେଳେ ପୁଣି
ଅଳକାନଗରୀ କ୍ଷଣେ କରୁ ଭସ୍ମୀଭୂତ ,
କହେଲେ କିପାଇଁ ଅଛି ସୁବର୍ଣ୍ଣ ଉନ୍ମେଷ
ଦେବଗୁଣାଧାମ ଧୀର ଚିତ୍ତ ଶାନ୍ତମତି

ରିପୁବଳେ ସିଂହାସନୁ ବିତାଡ଼ିତ ହୋଇ
ସୁବୃଦ୍ଧା ନାରୀ ପ୍ରାଣପ୍ରିୟେ କରିବନଚାରୀ
ଅନ୍ଧ ଜନକ ଜନନୀ ସଙ୍ଗେ ସେବି ତାଙ୍କୁ
ନିବିଡ଼ କାନନ ମଧ୍ୟେ ବିରଚି କୁଟୀର
ସମାଧି ବିନୟେ ଦିନ କରନ୍ତେ ଯାପନ ;
କିନ୍ତୁ କି କାରଣେ ଅଛି ମଦ୍ରେଶନନ୍ଦନୀ
ପତିଗତପ୍ରାଣା ସତୀ ଶିରୋମଣି ଧନୀ
ସାବିତ୍ରୀ ସୁନ୍ଦରୀ ତବ ତନୁ ସହଚରୀ
ଜାଣନ୍ତି କି ହେ ତିଳମାତ୍ର ଦେବ ସତ୍ୟବାନ ?
ଶୋଭାକରେ ଅଛ ଦେବୀ ଭୁଜବଲ୍ଲୀଯୁଗେ
ଛନ୍ଦି ଚିରବାଞ୍ଛିତ ନିଧି ଅଙ୍କେ ସେ
ନେଇ ବିଷାଦିନୀ ମୂର୍ତ୍ତି ଗମନ୍ତ ସଙ୍ଗରେ ;
ଶାରଦ ମେଘ ନିର୍ମୁକ୍ତ ପୂର୍ଣ୍ଣ ଶଶଧର
ପରାଭବ ଯାଉଥିଲା ଯେ ମୁଖପଙ୍କଜେ
ଅମଳପ୍ରଫୁଲ୍ଲ ସୁସ୍ନିଗ୍ଧ ସେ ରମ୍ୟ ବଦନ
ଦାରୁଣ ବିଷାଦ ଗ୍ରାସେ ନିପତିତ ହୋଇ
ରାହୁଗ୍ରସ୍ତ ଶଶିକଳା ସମ ହୀନପ୍ରଭ ।
ଘନକୃଷ୍ଣ ସୁକୁଞ୍ଚିତ ରମ୍ୟକେଶପାଶ
ଅନାବୃ ବିକ୍ଷିପ୍ତହୋଇ ଦୋଳଇ ଚରଣେ ,
କର୍ଣ୍ଣମୂଳେ ଏକଲ୍ପେ ବିଭୂଷଣପାଦେ
ରହିଅଛି ଚିତ୍ର , ତେଣୁ ବାହ୍ୟଜ୍ଞାନଶୂନ୍ୟା ,
ଚିତ୍ରନ୍ୟସ୍ତ ହୋଇଅଛି ଆଭରଣହୀନ,

ସଧବା ଯୁବତୀଙ୍କ ମାନ ବଳୟ ଦ୍ୟୁତି
ଦେବୀ-କର-କିଶଳୟେ ପାଉ ଅଛି ଶୋଭା ।
ଶ୍ରୀବତ୍ସ ସଙ୍କେତେ ଯାହା ଦେଖାଇ କହୁଛି
"ଦେଖ ଦେଖ ପ୍ରିୟ ସଖୀ ! କି ସୁନ୍ଦର ବୃନ୍ତେ
ସଦ୍ୟ ବିକଶିତ ଏହି ଅରୁଣ-ସୁମନ
ବିସ୍ତାରି ସୌରଭ-ସୁଧା ତୋଷଇ ମାନସ ,
ପ୍ରେମେ ମତ୍ତ ହୋଇ ଦେଖ ଭ୍ରମନ୍ତି କି ରଙ୍ଗେ
ମୃଗ କୃଷ୍ଣସାର ଆଦି ବନ୍ୟଜୀବଗଣି
ଧେନୁସଙ୍ଗେ ଛାୟା, ପୁଣି ଦେଖଗୋ କେମନ୍ତେ
ଉଡ଼ି ଉଡ଼ି ଖେଳୁଛନ୍ତି ବିଟପୀ ଶିଖରେ
କି ସୁଖରେ ପ୍ରେମଭରେ ପକ୍ଷୀନିକର ।"
ପ୍ରବେଶିଲା ନାହିଁ ତବ ସୁଧାମୟୀ ବାଣୀ
ଧ୍ୟାନମଗ୍ନା ସୁନ୍ଦରୀର କର୍ଣ୍ଣପଟହରେ
ବୀଣାର ଝଙ୍କାର ଯଥା ବଧିର ଶ୍ରବଣେ
ଅଛନ୍ତି ଦେବୀ ତବ ମଙ୍ଗଳ ମନାସି
କିନ୍ତୁ ନିଶ୍ଚିତ ତହିଁରେ ପ୍ରଚ୍ଛନ୍ନ ଭାବରେ
ବଧିର ନିଚୁଡ଼ି ତନ୍ତୁ ବସ୍ତ୍ରାବୃତକର ,
ସତୀର ଅମିତତେଜ କେତେ ଶକ୍ତିମନ୍ତ
ସତୀର ମହିମା ଅବା କେତେ ଯେ ପ୍ରଚଣ୍ଡ
ଦେଖାଇବେ ନିଜପ୍ରାଣେ ଅଦ୍ଭୁତକୌଶଳେ
ସତୀବ୍ରତବଳରେ ଅଛି ମୂର୍ତ୍ତିମନ୍ତ ଶକ୍ତି
ନିଦ୍ରିତ ସତ୍ତ୍ୱ ସ୍ଫୁର୍ତ୍ତି ପ୍ରଚଣ୍ଡ ବିକ୍ରମେ

ସ୍ୱାମୀ-ପିତୃକୁଳ କର ବିପଦୁଁ ଉଦ୍ଧାର
ଦେଖାଇବେ ନାରୀକୁଳେ ସତୀତ୍ୱ-ଆଦର୍ଶ,
ଦର୍ଶନେ ତା ଜଗଦ୍‌ବାସୀ ହୋଇ ବିସ୍ମୟାନ୍ୱିତ
ଯାବତ ଚନ୍ଦ୍ରାର୍କ ଏହି ଅନନ୍ତ ଅମ୍ବରେ
ହେଉଥିବେ ଅବନତ, ଘୋଷୁଥିବେ ସୁଖେ
ତାଙ୍କ ଯଶୋଗୀତି ଆହା କେତେ ଦିନଯାଏ,
ଆର୍ଯ୍ୟ ଗୌରବ ମଣ୍ଡିତ ଧନ୍ୟରେ ଭାରତ !
କେଉଁ ଶୁଭକ୍ଷଣେ ଧନ୍ୟା ଏ ଦେବଦୁର୍ଲଭ
କଲୁ ପ୍ରସବ ତୁହି ପୂତ ଅଙ୍କେ ତୋର ,
ନମେ ମା ସାବିତ୍ରୀ ସତୀ ! ତବ ପଦାମ୍ବୁଜେ
ଦେଖିଯା ପଦ୍ମକଳ୍ପ ଚର୍ମଚକ୍ଷୁ ନେନ
କଳୁଷନାଶିନୀ ତବ ହିରଣ୍ମୟୀ ମୂର୍ତ୍ତି ,
ଦୟାକର ସତି ! ଏହି ପତିତ ଉତ୍କଳେ
ତୁମ୍ଭ ଶକ୍ତିମନ୍ତ୍ର ହେଉ ଭିତର ସଦମ୍ଭେ
ଉତ୍କଳ ଅବଳାବୃନ୍ଦେ , କୋଟି କୋଟି ନାରୀ
ହୁଅନ୍ତୁ ଉତ୍କଳେ ଜନ୍ମ ଲଭି ତୁମ୍ଭ ଶକ୍ତି ,
ସତୀର ପବିତ୍ର ତେଜେ ଉତ୍କଳଭୁବନ
ହେଉ ଚିରଦିନ ପାଇଁ ସୁଖ-ଶାନ୍ତିମୟ ।

## ମୋ ଦେଶ ।

(୧)

ଯେଉଁ ଦେଶେ ଜନମ ମୋର ସେ ଅତି ମହତ ,

ନୁହେ ଅନ୍ୟ ଅଟେ ସେହି ଉତ୍କଳ ଦେଶଟ !
ଯହିଁ ବିଶ୍ୱନାଥ ହର
ନିତ୍ୟ ନୃତ୍ୟ ରୂପଧର
ପତିତ ପାବନ ବାନା ଧର ବରଭୁଜେ
ଉଦ୍ଧରନ୍ତ ପାପୀ ତାପୀ ସକଳ ମନୁଜେ

(୨)

ମୋର ଜନ୍ମଦେଶ ଅଟେ ମହାପୁଣ୍ୟମୟ
ବେଷ୍ଟିତ ନାନାସ୍ଥାନେ ତୀର୍ଥ ନିଚୟ ,
କୋଣାର୍କ ଭୁବନେଶ୍ୱର
ନୀଳାଚଳ କ୍ଷେତ୍ରବର
ମୁକ୍ତିକାମୀ ମାନବର ହିଦିବ ପ୍ରୟାଣ-
ପାଇଁ କି ନିର୍ମିତ ସେହ ସୁରମ୍ୟ ସୋପାନ ?

[୩]

ମୋରଜନ୍ମଦେଶ ଅଟେ ଧର୍ମର ଅକର
କେତେ ଧର୍ମସାର ଏଥିହୋଇଛି ପ୍ରଚାର
ଆର୍ଯ୍ୟଧର୍ମ ସନାତନ
ଯହିଁ ନିତ୍ୟ ବିଦ୍ୟମାନ
"ଅହିଂସା ପରମ ଧର୍ମ"-ବୌଦ୍ଧଧାରଜାତି
କାଳବଳେ ଲୁପ୍ତ ତାର ନଷ୍ଟହୋଇଛିତି ।

(୪)

ମୋର ଜନ୍ମଦେଶ ଅଟେ ସୁକଳା ନିପୁଣ
କେତେ ଶିଳ୍ପୀଚିହ୍ନ ଅଛି କାରୁକାର୍ଯ୍ୟେ ପୂର୍ଣ୍ଣ

ପ୍ରାଚୀନ ଶିଳ୍ପ ଗୃଭୂମି
ମୂକସାକ୍ଷୀ ଖଣ୍ଡଗିରି
ଦର୍ଶନମାତ୍ରକେ ରମ୍ୟ କୋଣାର୍କ ମନ୍ଦିର
ବିସ୍ମୟେ ମଗନ ନୁହେ କାହାର ଅନ୍ତର ?

(୫)

ମୋର ଜନ୍ମଦେଶ ଅଟେ ଶାନ୍ତିର ଆଶ୍ରମ
ଅଛି କେତେ ସରଳତାମୟ ପଲ୍ଲୀଗ୍ରାମ
ପଲ୍ଲୀଶୋଭା ମନୋରମ
ପଲ୍ଲୀସୁଖ ଅନୁପମ
ନାଟ୍ୟସଭ୍ୟେ ପରିପୂର୍ଣ୍ଣ ସୁଦୃଶ୍ୟ ନଗର
ବିରାଜନ୍ତି ସ୍ଥାନେ ସ୍ଥାନେ ଉତ୍କଳ ବକ୍ଷର ।

(୬)

ମୋର ଜନ୍ମଦେଶ ଅଟେ 'ସୁଜଳା' 'ସୁଫଳା'
ବ୍ରାହ୍ମଣୀ ବୈତରଣୀ ମହାବେଗା ଚିତ୍ରୋତ୍ପଳା
ମର୍ଦ୍ଦି ଯାର କଳେବର
ବହିଛନ୍ତି ନିରନ୍ତର
ତାହେତୁ ପ୍ରଦେଶ କରି ଶସ୍ୟ ଶ୍ୟାମଳତା
ଧନେ ଧାନ୍ୟେ ତେଣୁ ହିଁନା ଉତ୍କଳ ପୂରିତ

(୭)

ମୋର ଜନ୍ମଦେଶ ଅଟେ ଶୋଭାର ସଦନ
କେତେ ବନଗିରି କୁଞ୍ଜ ଏଥି ବିଦ୍ୟମାନ
ନୈସର୍ଗିକ ଶୋଭା ପୂର୍ଣ୍ଣ

ମାଲ୍ୟଗିରି ମେଘାସନ
ଉତ୍କଳ ପ୍ରକୃତି ସୁଶ୍ରୀ କ୍ରୀଡ଼ା କୁଞ୍ଜମାନ
ସଜାଡ଼ି ରଖି ଅଛନ୍ତି କେତେ ଶୋଭାବନ !

(୮)

କେତେ ବୀର କବି ଜ୍ଞାନୀ ମୋ ଦେଶେ ଜନମ
ଦେଶେ କାଳେ ପ୍ରସାରିତ ଯାଙ୍କ ପୁଣ୍ୟନାମ
ଦୁର୍ଲଭ ପ୍ରତିଭାବଳେ
କେତେ କର୍ମ ସାଧିଗଲେ
ଯେ ପ୍ରତିଭା ଯୋଗୁଁ ସିନା ଉତ୍କଳସନ୍ତତି
କହନ୍ତି ଗର୍ବେ ଆମ୍ଭେ ଅଟୁଁ ଉଚ୍ଚଜାତି ।

(୯)

କିନ୍ତୁ ଭାଗ୍ୟଦୋଷେ ଆଜି ଉତ୍କଳ ଜନନୀ
ହରାଇ ସର୍ବ ସମ୍ପଦ କାନ୍ଦେ ଅଭାଗିନୀ
ଦିବସ ରଜନୀ ତାର
ନେତ୍ରୁ ବହେ ଅଶ୍ରୁଧାର
ପ୍ରାଣପ୍ରିୟ ଜନ୍ମଭୂମି ଏପରି ଅବସ୍ଥା
ଦର୍ଶନେ ନ ଲାଗେ କାର ପ୍ରାଣେ ଘୋର ବ୍ୟଥା ?

(୧୦)

ନ କାନ୍ଦ ନ କାନ୍ଦ ମାତଃ ତୋର ଏ ଦୁର୍ଦ୍ଦଶା
ନ ରହିବ ଚିରଦିନ ମନେ ବାନ୍ଧ ଆଶା
ଯାଉଛି ବିଷାଦ ନିଶା
ଆଗତ ସୁଖମୟ ଉଷା

ପ୍ରାଚୀନ୍କଲ୍ ମଣି ଏବେ ନବୀନ ତପନ
ଦେଲେଣି ସକଳ ପ୍ରାଣେ ନବ ଜାଗରଣ ।

(୧୧)

ନବୀନପ୍ରଭାତେ ସର୍ବ ଉତ୍କଳର ସୁତ
ନବୋତ୍ସାହ ନବୋଦ୍ୟମେ ହୋଇ ପ୍ରଣୋଦିତ
ଜନନୀ ଦୁଃଖ ମୋଚନ
ଢ଼ାଳନ୍ତୁ ମନ ପ୍ରାଣେ
ଜାତିଧର୍ମ୍ମ ନିର୍ବିଶେଷେ ସର୍ବେ କୁଷ୍ଟମନେ
କର୍ମ୍ମେ ରତ ଜନ୍ମଭୂମି ମଙ୍ଗଳ ସାଧନେ !

—**—**—

## ବସନ୍ତ—ନିର୍ବାସ । *

ବସନ୍ତବୃତ୍ତ ।

ପରଭୃତ ରୁତ ମଳୟ ମରୁତ
ସୁଗନ୍ଧ ସୁମନ ଅମାପ
ଖର ସୌରକରେ ପ୍ରପାତ ଶୀକରେ
ନିଦ୍ଧ ଯଷ୍ଟିରେ ଶନ୍ତିସ୍ତୂପ, ଗଢ଼ଛ

* ପ୍ରଧାନପାଠ ପ୍ରପାତକୁ ବସନ୍ତ-ନିର୍ବାସକୁ ଲକ୍ଷକରି ଏକମାତ୍ର ପଦ୍ୟ ବିଶିଷ୍ଟ କବିତାଗୋଷ୍ଠିଏ ଲେଖାଏଁ ରଚନା କରିବା ପାଇଁ ସ୍ୱର୍ଗୀୟ ମହାରାଜ ଶ୍ରୀ ସଚ୍ଚିଦାନନ୍ଦ ଦେବ କୌଣସି ସମୟରେ ଦେବଗଡ଼ର ସାହିତ୍ୟସେବୀ ମାନଙ୍କୁ ଆଦେଶ ଦେଇଥିଲେ, ସେହି ସମୟରେ ଏହି କବିତାଟି ରଚିତ ହୋଇ ଥିଲା ।

ଚିରବସନ୍ତର ଆବାସ ,
ତ୍ରିଭୁବନ ଦେବ-   ଲଳିତ ବାଞ୍ଛ
ସେହିଏ 'ବସନ୍ତ-ନିବାସ' ।

## ସ୍ୱପ୍ନ—ଦର୍ଶନ ।

ମୋ ପ୍ରାଣ ପରମେଶ୍ୱର ଭେଟିବାର ଆଶେ
ଗଲି ମୁହିଁ ଦେଶାନ୍ତର ଉଦ୍‌ବିଗ୍ନ ମାନସେ
ଜଳ ସ୍ଥଳ ଅନ୍ତରୀକ୍ଷ ଆଦି ନାନାସ୍ଥାନ
ଭ୍ରମି ଭ୍ରମି ଅବିରତ ହେଲି ଅବସନ୍ନ
କ୍ଷାନ୍ତି ନଦେଉଥିଲି ସେହି ଅରାଧ୍ୟଦେବତା
ଅଖିଳ ବ୍ରହ୍ମାଣ୍ଡ ପତି ମୋ ଜୀବନଦାତା
ନୈରାଶ୍ୟ ଅନ୍ତରେ ପୁଣି ଘର୍ମାକ୍ତ ଶରୀରେ
ହେଲିମୁଁ ପ୍ରବେଶ ଏକ ତଟିନୀର ତୀରେ ;
ବିସ୍ତୃତ ତଟଖଣ୍ଡ ,   ବିମଳ ସଲିଳ
ତଟିନୀ ଚରଣ ବନ୍ଦେ ହୋଇ ଛଳ ଛଳ,
ବିଶ୍ରାମୁ ମୁଁ ତଥିପରେ ସାନ୍ଧ୍ୟସମୀରଣ
ବୀଚିମାଳା ସୃଷ୍ଟି ସଙ୍ଗେ ଯେସନି ନୀରବଣ
ବୋଲାଇଦେଲା ଶରୀରେ ମୋ ଶାନ୍ତି-ସୁଧା ଧାର
ଶ୍ରାନ୍ତ କ୍ଲାନ୍ତ ଚିନ୍ତାବହ୍ନି ଦୂରହେଲା ତୁର ।
ତଟରୁହ ବୃକ୍ଷଧାର ସୁବାସ ସୁମନ—
ଗନ୍ଧେ ପୁଲକିତ ହେଲା ମୋର ପ୍ରାଣ ମନ ।
ଭ୍ରମର ଗୁଞ୍ଜନ ପୁଣି କୋକିଳ କାକଳି
ମୁଖରିତ କରୁଥିଲା ସେ ବିଜନ ସ୍ଥଳୀ

ଏମନ ସମ୍ପଦ ଲଭେ ମହାଶାନ୍ତି ଠାରୁ
ଭକ୍ତି ପ୍ରସନ୍ନତା କ୍ଷଣେ ହୋଇଲା ଅଶ୍ୱସ୍ତ ।
ଶ୍ରାନ୍ତ ଦୂରପଥେ ତନ୍ଦ୍ରା ପ୍ରବେଶି ତୁରିତ
ଧୀରେ ଧୀରେ ଚକ୍ଷୁଦ୍ୱେନି କରିଲା ମୁଦ୍ରିତ ।
କ୍ରମେ ଗାଢ଼ ନିଦ୍ରାବେଶେ ହେଉଁ ଅଚେତନ
ଦେଖିଲି ଅଚିନ୍ତ୍ୟ ଏକ ଅଦ୍ଭୁତ ସ୍ୱପନ
ସହସା ଖୋଲିଲ ଦେଶ ଉଜ୍ଜ୍ୱଳ ଭେଦନ
ଅଗ୍ରେ ଏକ ବିଦ୍ୟାଧରୀ ହେଲେ ଅବତୀର୍ଣ୍ଣ ।
ସୁନ୍ଦର ପ୍ରଭା ମଣ୍ଡଳ ବେଢ଼ି ଚଉପାଶ
କରୁଥିଲା ଦିବ୍ୟମୂର୍ତ୍ତି ମହିମା ପ୍ରକାଶ ।
ସସ୍ମିତେ ସମ୍ବୋଧି ଦେବୀ କହିଲେ ଏସନେ
"ଯେଉଁ ଚିନ୍ତାସ୍ରୋତ ବତ୍ସ! ବହୁଛି ତୋ ମନେ
ଜାଣ ସେ ସମସ୍ତ ତତ୍ତ୍ୱ ଅଛି ତୋ ପାଶ
ଶୁଣି ମୋର ଉପଦେଶ ଚିନ୍ତାସ୍ରୋତ ନାଶ ।
ବ୍ୟାକୁଳ ଅନ୍ତରେ ଯାର କରୁ ଅନ୍ୱେଷଣ,
ସତତ ସର୍ବସ୍ୱ ସେତ ଛନ୍ତି ବିଦ୍ୟମାନ,
ତାଙ୍କୁ ମାନବ ପୁଣି ଜଡ଼ରୁ ଚେତନ
ଦେବେ ନିତ୍ୟ ବସ୍ତୁ କିଛି ବ୍ରହ୍ମ ସନାତନ ,
ନାହିଁ କାର ଶକ୍ତି, ବତ୍ସ! ଚର୍ମଚକ୍ଷୁ ଯୋଗେ
ଦେଖିବ ସେ ଦିବ୍ୟମୂର୍ତ୍ତି ବ୍ରହ୍ମାଣ୍ଡ ଅଭୋଗେ
ବହୁ ତପସ୍ୟାର ଫଳେ ଜ୍ଞାନୀ ଜନମାନେ

ଜ୍ଞାନନେତ୍ରେ ଦେଖନ୍ତୁ ସେ ମୂର୍ତ୍ତି ବିମୋହନେ
ବୋଇଲାନ୍ତି ବତ୍ସ ! ତୋର ଭକ୍ତିରେ ଭୋଳ
ସ୍ତବନୁଆ ଅଭିଳାଷ ଅଶ୍ୱାସ ନିଷ୍ଫଳ ।
ଯେତେକାର୍ଯ୍ୟ ସାଧନ ଅଛେ ପ୍ରେରକ ରୂପରେ
ଏକାତ୍ମମାନବ ଛାତ୍ର ସାଧନରେ ସତତେ ।
ସତ୍ୟପଥେ ରହି ସତ୍କାର୍ଯ୍ୟେ ପ୍ରାଣଦେଇ
ପରହିତ-ବ୍ରତେ ବ୍ରତୀ ନିରନ୍ତର ହୋଇ
ମାନବ ଧର୍ମନୀତିର କର୍ମେ ଅନୁକ୍ଷଣ
କଟାଅ ଏ ସୁଦୁର୍ଲ୍ଲଭ ମାନବ ଜୀବନ
ଯେକାଳେ ତୋ କର୍ମ୍ମକାଳ ହୋଇବ ନିଃଶେଷ
ଦେଖିଯିବେ ନିତ୍ୟଧାମେ ପ୍ରଭୁ ପରମେଶ ,
ସେ ଉଭୟ ପଦତଳେ ଲଭିବୁ ଆଶ୍ରୟ
ଭକ୍ତିରୁ ଏ ଦୈବ ସୁଖ ଅମୃତ ଅକ୍ଷୟ ।"
ଶୁଣି ଏ ଅମୃତମୟ ଉପଦେଶବାଣୀ
ସମ୍ମୁଖେ ଦେବୀ ପଦ-କମଳେ ପ୍ରଣମି
କମନୀୟ ବଚନେ ପୁଚ୍ଛିଁ ନିଜ ପରିଚୟ ,
ଉତ୍ତରିଲେ କୃପାମୟୀ ହୋଇଣ ସଦୟ
"ନଜାଣିଲୁ, ମୋତେ ବତ୍ସ ! ମୋନାମ ସଂଜ୍ଞା
'ପ୍ରଜ୍ଞା' ବୋଲି ଜଗତରେ ହୋଇଛି ପ୍ରଖ୍ୟାତ ।
ଏତେ ମାତ୍ର କହି ଦେବୀ ହେଲେ ଅନ୍ତର୍ହିତ
ସ୍ୱପ୍ନଭଙ୍ଗେ ତତକ୍ଷଣ ହେଲି ମୁଁ ଜାଗ୍ରତ ।

-*—※—*-

# ନୀରବେ ।

ନୀରବେ ଉଠୁଛି ଅସି
ନୀରବେ ସାଧିବ ସବୁ
ନୀରବେ କର୍ତ୍ତବ୍ୟଶେଷେ
କଦାପି ନେବମୁଁ ଭଲୁ ।୧।

ନୀରବେ ଉଠଇ ଶଶୀ
ବିମଳ ଅକାଶ ଦେଶେ
ନୀରବେ ଢାଳଇ ଅଶ୍ରୁ
ଅନନ୍ତ ପ୍ରେମ ଅବେଶେ ।୨।

ନୀରବେ ଜଗତ ପ୍ରାଣ
ସେ ଅଶ୍ରୁ ଅମୃତ ଭଳି
ପ୍ରକାଶି ବିମଳକାନ୍ତି
ନବପ୍ରାଣେ ଉଠେ ଜାଗି ।୩।

ନୀରବେ ପ୍ରଭାତ ବାୟୁ
ମୃଦୁ ମୃଦୁ ଗତି କରୁ
କି ଦୁର୍ଲ୍ଲଭ ସୁଖ ଅଣି
ବିଶ୍ୱପ୍ରାଣେ ଦିଏ ଭରି ।୪।

ନୀରବେ ପୁଷ୍ପସ୍ତବକୁ
ଢାଳନ୍ତି ସୁଗନ୍ଧ ରାଶି
ନୀରବେ ସନ୍ତୋଷି ସର୍ବେ
ପୁଣିବାହିଁ ଯାଏମିଶି ।୫।

ନୀରବେ ଉଠି ତପନ
ଉଜ୍ଜ୍ୱଳ ସ୍ୱର୍ଣ୍ଣ ଝଲକେ

ନୀରବେ ଗମେ ଦିନାନ୍ତେ
ଧୀରେ ଧୀରେ ଅସ୍ତପଥେ । ୬ ।
ନୀରବେ କେତେ ଭାବନା
କ ଗତ ହୁଅଇ ମନେ
ନୀରବେ ହୁଅଇ ପୁଣି
ଅନ୍ତର ଅପକ୍ଷୟେ । ୭ ।
ନୀରବେ ସରଇ କାଳ
ଜୀବନର ସୁଖରାଶି
ଏହିଟି ଯାତନା କାଳ
ନୀରବେ ଏକାନ୍ତେ ବସି । ୮ ।
ଏକାନ୍ତ ବାସନା ପ୍ରଭୋ !
ରଖହେ ! ମୋତେ ନୀରବେ
ନୀରବେ ଭୁଞ୍ଜିବି ତାହା
ସୁଖ ଦୁଃଖ ଯାହା ଦେବେ । ୯ ।
କରିଲେ ମୁଁ କେବେ ଦୋଷ
ନୀରବେ ଦଣ୍ଡବିଧାନ—
କର ପ୍ରଭୁ ପରମେଶ
ନ ଜାଣୁଁ ଜଗତଜନ । ୧୦ ।
ପ୍ରାଣର ଅନ୍ତିମ ଯାମେ
ନୀରବେ ଜଗତ ଛାଡି,
ଏହି ଇଚ୍ଛା ମୋହର ଭବ
ଲଭିବ ଚରଣପ୍ରାନ୍ତ । ୧୧ ।

# ଭ୍ରାନ୍ତି ।

କେ ଜାଣେ ମତେ କେତେ       ପୂଜିଲ ତୁମ୍ଭଙ୍କୁ
ତଥାପି ତୁ ନୋହୁ ପ୍ରସନ୍ନ,
ଭକତବତ୍ସଳ !       ଭକତଙ୍କ ପ୍ରତି
ଦେଖାଉଛ କେତେ ଦାରୁଣପଣ ।
ଭବ ନୀର ଅଶେ       ନୟନବନ୍ୟାରେ
ଅତଳେ ମୁଁ ଭାସିଯାଉଛି,
ଏ ଘୋର ଝଞ୍ଜାରେ       ଝଞ୍ଜାରେ ଚାହିଁ
ଦିଗବିଦିଗନ୍ତର ବନ ପଡ଼ିଛି ।
କଠୋର ଶାସନେ       ଶାଣିତ ଖଡ୍ଗର
ଅନଳେ ଚିତ୍ତ ହୋଇଲା କ୍ଷୀଣ,
ବିଭୂତିର ଲିପ୍ସା       ତେଜିଲି ମାନସୁ
ବଳୁଚଳୁ କଲି ଅବଲମ୍ବନ ।
ଏତେ ଅଯତନେ       ଲାବଣ୍ୟ ବପୁର
ଅମନଯୋଗେ ହେଲା କଗ୍ର ଅବ୍ୟାୟ,
ତଥାପି ଭଜିଲି       ଶ୍ରୀକଞ୍ଜ ଚରଣ
ଲଭିବାର ପାଇଁ ପ୍ରେମପୀୟୁଷ ।
କାହିଁ ସେହୁ ପ୍ରେମ       କାହିଁ ବା ସେ ଶାନ୍ତି
କାହିଁ ରେତ କେହୁ ନ ଦେଲେ ଦେଖା,
ଦୂର୍ବାଙ୍କ ପତ୍ର-       ଝରହେଲା ଭାଗ୍ୟ
ବିଯୋଗ ଧରିବ ତୋର ନିଶାଗା,

ତଥାପି ହୃଦରେ   ନୋହୁ ନିରୁଦ୍ୟମ
ଆଶା ଯଷ୍ଟି ପରେ ଦେଇଣ ଭର ,
ବୁଲିଲି ତୁମ୍ଭଙ୍କୁ   ଖୋଜି ନାନାସ୍ଥାନ
ଥାଇ ଜଗତ୍କାନ୍ତି ଶରୀରଭର ।
ନଳଭୂମି ସ୍ଥାନ   ଦେଖିଣ ଚଳିଲି
କେତେ ବନଗିରି ଦୁର୍ଗମପଥେ ,
କାଶୀ, ବୃନ୍ଦାବନ   ଶ୍ରୀପୁରୁଷୋତ୍ତମ
ଆଦି କେତେ ପୁଣ୍ୟକ୍ଷେତ୍ର ଭାରତେ ,
ନାନାରୂପେ ନାନା-   ରୂପରୁ ତୁମ୍ଭର
ପୂଜିଲି ହେ ନାଥ ଅଶାନ୍ତି ଚିତ୍ତେ
ତେବେ ସୁଦ୍ଧା କେବେ   ନହେଲ ପ୍ରସନ୍ନ
ନିରାଶ ହୃଦେ ମୁଁ ମରେଁ ବ୍ୟଥିତେ ।
ତୁମ୍ଭ ନିମନ୍ତରେ   ଛାଡିଲି ସଂସାର
ଦାର-ସୁତ-ବନ୍ଧୁ-ବାନ୍ଧବ-ପ୍ରେମ
ସର୍ବୋପରେ ଗଣି   ପ୍ରେମମୟ ହରି
ଶାନ୍ତି-ମୁକ୍ତି-ପ୍ରଦ ତୁମ୍ଭର ପ୍ରେମ ।
ତଥାପି ଯଦ୍ୟପି   ନହେଲ ସନ୍ତୁଷ୍ଟ
ଛାରପ୍ରାଣ ଘେନି ବଞ୍ଚିବ ବସ ।
ନୁହ ତୁମ୍ଭେ କେବେ   ଭକ୍ତିବଳେ ବଶ
'ଭକତବତ୍ସଳ' ମିଥ୍ୟା ଅବଶ୍ୟ ।
ଏବେରେ ସହସା   ବାଜଇ ମୋକର୍ଣ୍ଣେ
'ଅଟଳ ଶବଦେ ମଧୁର ବଚନ ,

"ବୃଥାବକ୍ଷ କ୍ଷୀଣ କରୁଏ ପ୍ରୟାସ
ପଣ୍ଡଶ୍ରମ ମାତ୍ର କରୁ ଅର୍ଜ୍ଜନ ।
ଭ୍ରାନ୍ତପଥେ ଚାଲି ନିତ୍ୟଥିଲୁ ମୋତେ
ପାଇବୁ କେସନେ ଦର୍ଶନ ମୋର ,
ସ୍ୱାର୍ଥଧର୍ମ୍ମେ ହୃତ ମର୍ଦ୍ଦିନ୍ତୁ ଅସାରେ
ଭୋଗୁଥିଲୁ ତେଣୁ ଯାତନାଘୋର ।
ଭଜନ ପୂଜନେ ନୁହେଁ ମୁଁ ବଶ
ବୃଥା ଥିଲେ ସିନା ତପଶ୍ଚରଣ
କର୍ମ୍ମନିଷ୍ଠଗଣ, ଧର୍ମ୍ମେ ରତ ଜନ
ଲଭିଥାନ୍ତି ମୋର ଶୁଭକଲ୍ୟାଣ ।
ସ୍ୱାର୍ଥତ୍ୟାଗବ୍ରତ ଇଚ୍ଛାକର ବନ୍ଧୁ !
ଅନ୍ୟୋନ୍ନତି ଯୋଗେ କରସାଧନ ,
ଅନ୍ୟୋନ୍ନତିବଳେ କରିବୁ ଅକ୍ଲେଶେ
ସ୍ୱାର୍ଥବଧ ବାଞ୍ଛିତ ସାଧନ .
ପ୍ରେମପାଶେ ଯୋଗେ ବାନ୍ଧରେ ବିଶ୍ୱକୁ
ନିଜେ ବାନ୍ଧିହୁଅ ଜଗତପ୍ରେମେ ,
ଲଭିବ ତେବେ ମୋର ଶାନ୍ତିମୟପ୍ରେମ
ବସି ପାରିବୁ ବୈକୁଣ୍ଠଧାମେ ।

—o—

## ମିତ୍ର ଓ ଶତ୍ରୁ ।

ମିତ୍ରକହେ ଶତ୍ରୁ ବେଟା ବଡ଼ବଦମାସ
ସାରା ଦୁନିଆର ଦୁଷ୍ଟ କରୁ ସର୍ବନାଶ ,

ତେଣୁ ତୋତେ ଶ୍ରଦ୍ଧାଭରେ ନଦେଖଇ କେହି
ଦେଖ କି ସମ୍ମାନ ଦକ୍ଷେ ପାଉଅଛି ମୁହିଁ ।
ଏବେ ଏହା ଗୁଣେ ଶଣ୍ଡ, ବୃଥା ଗର୍ବ ତୋର;
ନବୁଝଇ ଅଜ୍ଞ ନର ଛଳନା ମୋହର
ଘଟେ ଯଦି ଦେହେ ଶତ୍ରୁକଷ୍ଟ, ଶତ୍ରୁକୁ ବାନ୍ଧିବ
ତେଣୁ ସର୍ବକାର୍ଯ୍ୟେ ଯେହ୍ନେ ଲଭେ ପଶୁଭବ ;
କେହ୍ନେ ବାସ୍ତବରେ ମୁହିଁ ମଙ୍ଗଳ ସାଧକ
ଅନ୍ୟାୟ ଦେଖିଲେ ମୁହିଁ କରଇଁ ସତର୍କ
ମୋର ଭୟେ ମନ୍ଦକାର୍ଯ୍ୟ ବିରତନ୍ତି ନରେ,
ମୋ ଆଗରେ ଅନ୍ୟାୟୀର ନହୁଏ ନିସ୍ତାରେ ।
ଗ୍ରୀବ ଚହଳା ସଙ୍କେତେ ଶାସଇଁ ମୁଁ ବତ୍ସ,
ଭ୍ରାନ୍ତପଥୁ ଭ୍ରାନ୍ତେ ଭୃତ୍ୟେ ରକ୍ଷା କରଇଁ ଅବଶ୍ୟ ।
ତୋର ପରାମର୍ଶେ ଯେହ୍ନେ ଚୌର୍ଯ୍ୟେ ରତ ଥାଏ
ମୋର ଦରଶନେ ସେହ୍ନେ ତକ୍ଷଣ ପଳାଏ ।
ଅନ୍ୟାୟ ଅଧର୍ମ ଅପକାର୍ଯ୍ୟ କଲେ କେହି,
ଜନ୍ତୁଙ୍କି ନିବୃତ୍ତ ତହିଁ କେବେ କରେଇଛୁ ?
ଭ୍ରଷ୍ଟଜୀବ ମୋବନ୍ଧୁତା, ତେବେ ଅବା ତୁହି
ଭାବ ଏହା ସର୍ବକାର୍ଯ୍ୟେ ନହେଉ କି ପୁଣ୍ୟ ?
ପାଣିଲୁ ପଥର କେହି କହିଲେ ତକ୍ଷଣ
ପ୍ରତ୍ୟୁତ୍ତର କଲି ତାର ନ ତୋଷେ କି ମନ ?
ତେବେ କିପାଁ ଗୁରୁକାର୍ଯ୍ୟ ଦେଖୁ ତୁହି ହାସ
ଅନ୍ୟାୟର ପ୍ରତିବାଦେ ହେବୁରେ ସମର୍ଥ ?

ତୋ ସାକ୍ଷାତେ ତୋର ନାମେ ତୋର ସାହଚର୍ଯ୍ୟେ
କେତେ ଧନ-ମଦମତ୍ତ ମାନବ ସମାଜେ ,
ହେଉ ନାହିଁ ଅକାତରେ ମନ୍ଦ ଅନୁଷ୍ଠାନ
ନାମାନ୍ତର ନୁହେ କି ତା ନରକ ଅର୍ଚ୍ଚନ ?
ପ୍ରତିଦାନ ଏକ୍ଷିକିରେ କୃତଘ୍ନପାମର
ନିଦର୍ଶନ ଏକ୍ଷିକିରେ ବନ୍ଧୁଦ୍ରୋହର ?
ମାତେ ମୋର ନାହିଁ ଲୋଡ଼ା ନିରପେକ୍ଷଭାବେ
ସାଧିବି ମୁଁ ଲୋକହିତ ମୋହମୟ ଭବେ
ଦେଖି ମୋର ସାଧୁକାର୍ଯ୍ୟ ଦେବେ ପୁରସ୍କାର
ଗୁଣଗ୍ରାହୀ ବିଶ୍ୱପତି ବ୍ରହ୍ମାଣ୍ଡ ଆଧାର ।

## ସନ୍ତୋଷ ଓ ଅସନ୍ତୋଷ ।

ରେ ସନ୍ତୋଷ ! ପାଇବାକୁ -ତୋତେ ଅବିରତେ
ଜଗତ ମଧ୍ୟରେ ଇଚ୍ଛା କରନ୍ତି ସମସ୍ତେ ;
ଲଭେ ଯେହୁ ତୋର ଶାନ୍ତିମୟ ଅଙ୍କେସ୍ଥାନ
କ୍ଷୁଦ୍ରାଦପି କ୍ଷୁଦ୍ରତରେ ତୃପ୍ତ ତାର ମନ ।
ନରହେ ତା ଉଚ୍ଚାକାଙ୍କ୍ଷା ଉଦ୍ୟମଶୀଳତା
କାର୍ଯ୍ୟ ନିଷ୍ପନ୍ନ ତୋର ଭକ୍ତ ଅଳସତା ,
ଶାକାନ୍ନ ଭୋଜନେ ତୃପ୍ତ ଉଦର ତାହାର
କନ୍ଥି ବସ୍ତ୍ରେ ଭାବେ ଯେହ୍ନ ପାଟ ପୀତାମ୍ବର
ଗୁଳ୍ମ ଗୁଳ୍ମ ପଦତଳ ହେଲେ ହେଁ ପୋଡ଼ା !
ନ ଛାଡ଼ଇ ତହିଁ କେବେ ଦେବାକୁ ପାଦୁକା

ଚଣ୍ଡ ଗ୍ରୀଷ୍ମେ ମସ୍ତକ ହେଲେହେଁ ଉତ୍ତପ୍ତ
ଚେଷ୍ଟା କରଇ ଲଭିବାକୁ ଅତପଣ ।
ପରଠାରୁ ଲଭିଲେହେଁ ମାନ ଅପମାନ
ପ୍ରତିକାର ଅର୍ଥେ ତାର ନଉଠଇ ମନ ।
ଅପ୍ରତିହତ ସାମର୍ଥ୍ୟ ହେଲେହେଁ ସଯତ୍ନ
ଇଚ୍ଛା ମୋର ରହିଥିବ ପର ପଦାନତ ;
ଶାଗ ପଖାଳରେ ତୃପ୍ତ ଓଡ଼ଅଢ଼ୀବନ
ବେଶୂଷିନା ସବୁଠାରେ ହୁଏ ସ୍ଥାନମାନ ।
କିନ୍ତୁରେ ସନ୍ତୋଷ ମୁଁ ହିଁ ନ ଇଚ୍ଛଇଁ ତୋତେ
ସ୍ୱଜାତିର ଅସନ୍ତୋଷ ମୋର ହୃଦଗତେ ।
ଅନନ୍ତଶକ୍ତି ସମ୍ପୃକ୍ତ ମାନବ ସନ୍ତାନ
ନ ଅଟଇ କଦାକାଳେ ଶ୍ରମପ୍ରାଣପଣ
ସ୍ୱଳ୍ପଶାଳସ୍ୱ ସ୍ୱଳ୍ପ ଧନରେ ସନ୍ତୋଷ-
ରକ୍ଷିବା କି ପୌରୁଷର ଅଟଇ ଆଦର୍ଶ ?
ଅନ୍ତରେ ସନ୍ତୋଷ କେବେ ନହେଉ ମୋ ପ୍ରାଣ
ସଦାବେଳେ ଉଚ୍ଚାକାଂକ୍ଷା ଥାଉ ବର୍ଦ୍ଧମାନ
ଶାକାନ୍ନ ଭୋଜନେ ତୃପ୍ତ ନ କର ଉଦର
ପକ୍ୱାନ୍ନ ଭୋଜନ ଲଭେ ଥିବ ତତପର
ସାମାନ୍ୟର ସୀମାଲଙ୍ଘି ହେବ ବଡଲୋକ
ନଗର ଚଢ଼ିବ ଗାଡ଼ୀ ହସ୍ତୀ ଓ ଘୋଟକ ,
ଜୀର୍ଣ୍ଣ ପର୍ଣ୍ଣ କୁଟୀରରେ ନରଖି ଶରୀର
ଶ୍ରମବଳେ ଲଭିବ ମୁଁ ସୌଧହର୍ମ୍ୟବର ।

ରାଜପଦେ ସୁଖ ତୁଚ୍ଛ ନକର ମାନସ
ସମ୍ରାଟପଦକୁ ଲଭେ ଭରତ ପ୍ରବାସ ,
କର୍ମମୟ ବଳେ, ସଦାକର୍ମପ୍ରିୟ ଯେଧୟ
ଅଟଇବ ଧର୍ମ-ଅର୍ଥ-କାମ-ମୋକ୍ଷଗୁରୁ ।

*—*※*—*

## ସୁଖ ଓ ଦୁଃଖ ।

ରେ ମାନସ! ବୃଥା କିପାଁ ଛନ୍ତୁ ସୁଖ ପଛେ
ସୁଖତରଙ୍ଗେ କ୍ଷଣିକ ଦେଖୁନ୍ତୁ ନୟନେ ।
ସୁଖ-ସ୍ରୋତେ ଭସି ପୁଣି ଦେହୁତଡ଼ିକିଶର
ତୁଣ୍ଟେହେ ଉଦ୍ଭ୍ରାନ୍ତ ନରେ କର୍ତ୍ତବ୍ୟ ବିସ୍ମରି ।
ଦୁଃଖପ୍ରିୟ ନିକେତନ ଦରିଦ୍ର କୁଟୀରେ
ଅଭ୍ୟନ୍ତରସ୍ଥ ମାନବ ପ୍ରଶାନ୍ତ ମନରେ
ଦୃଢ଼ମନ ଅଟେ ଯହିଁ କର୍ମର ପ୍ରବାହ
ଦୁଃଖବେଗେ ପ୍ରବାହିତ ହୋଇ ଅହରହ
ଏକାଗ୍ରତା, ସତ୍ୟନିଷ୍ଠା, ପରୋପକାରିତା,
ମାତୃଭକ୍ତି, ଜୀବେଦୟା, ଉଦ୍ୟମଶୀଳତା
ତେଜସ୍ୱିତା, ନିର୍ଭୀକତା, ଅତିଥିବାତ୍ସଲ୍ୟ
ଦୟା, ସ୍ନେହ, ପ୍ରେମ, ପ୍ରୀତି ସଂଯମ ପାରକ୍ୟ
ଏହି ସ୍ୱର୍ଗୀୟ ସୁଗୁଣେ ବିଭୂଷିତ କରି
କରିଥିଲା ମାନବକୁ ଦେବତାର ସରି
ଦେଖ ତହିଁ ସ୍ୱର୍ଗେ ଅଛି ସୁଖ-ସୌଧବର
ବିଳାସ-ତରଙ୍ଗ ତହିଁ ଖେଳେ କିପ୍ରକାର

ସୁଖ-ମଦେ ମତ୍ତ ନର ଭୁଲି ନିଜକର୍ମ୍ମ
ଭୁଲି ଯାଉଅଛନ୍ତି ସଙ୍ଗେ ଜ୍ଞାନଧର୍ମ୍ମ ।
ଭାଙ୍ଗି ଗଲା ତାର କର୍ମ୍ମଦେବୀ ଉପାସନା,
ହେଉଅଛି ନିତ୍ୟ ନୂତ୍ନ ସୁଖ ବାସନା ।
ଦେବ ଦୁର୍ଲ୍ଲଭ ସୁଗୁଣେ କରି ପରିହାର
ହୋଇଛନ୍ତି କେତେକେ ଦେଖ ଦୁର୍ଗୁଣ ଆଧାର ;
ବିଳାସ ନିରୟେ ଢାଳିଦେଇ ନିଜଅଙ୍ଗ
ଢାଳଇ କେତେକେ ଦେଖ ସ୍ୱର୍ଗର ଅପାଙ୍ଗ ।
ନିଜେ ସେ ନିଜର ଶତ୍ରୁ ହୋଇ ପାପମତି
ଦୋଷର ଅଙ୍କୁରେ ସଦା ଉପୁଜଇ ମତି ।
କାମିନୀ-କାଞ୍ଚନ-ଧନେ ସତତ ଲାଳସା
ପୋଷୁଅଛି ନିରନ୍ତର ହୃଦୟେ ଦୁରାଶା ।
ସୁଖନିତ୍ୟ ସଙ୍କଟର ଚଞ୍ଚଳ ବାସନା
ଚରିତାର୍ଥ ଆଶେ ସାଧ୍ୟ ଅସାଧ୍ୟ ସାଧନା ।
ଅଭ୍ୟୁଦୟ ମନପ୍ରାଣ କରି କଳଙ୍କିତ
ମନ୍ୟୁଷ୍ୟ ମାନବେ ହିନ ସତତ ଲାଞ୍ଛିତ ।
ସୁଖରୁ ଜନ୍ମଇ ଯେହ୍ନେ ଆଳସ୍ୟ—ଆମୋଦ
ନିଶ୍ଚାର୍ଯ୍ୟ ସେ ସୁଖ-ଧନେ, ଏମନ୍ତ ବିପଦ ।
ମତ୍ତପଥେ ଧର୍ମ୍ମପଥେ ରହି ଅନୁକ୍ଷଣ
ସାଧି ନିଜ କର୍ତ୍ତବ୍ୟ ଯାପରେ ଜୀବନ ।

## ପୁଷ୍ପପ୍ରତି ।

କି ସୁନ୍ଦର ବୃନ୍ଦାବନେ ବସି ଫୁଲରାଣୀ
ମନ୍ଦାନିଳେ ଡାକ ,
ମୋହଛୋଟି-ଜନହୃଦ ସବେ ଭୃଙ୍ଗଙ୍କୁ
ସୁଖେ ଦକ୍ଷ ରକ୍ଷ ।
କି ଏବା କି ଗର୍ବାବେଶେ ମୋର ସୁକୋମଳ
କ୍ଷୁଦ୍ର ପ୍ରାଣଗୋଟି
ଜଣାଏ ହୃଦୟ ରାଗ ତାହାର ଚରଣେ
ନମେ କୋଟି କୋଟି ?
ମେଳି ଦେଇ ଅଛୁ ଧନି ! ଶୋଭାର ପସରା
କନ୍ତାର ସମ୍ମୁଖରେ
ହେତୁ ସକଳେ ତାହା ଭୁଲି ଭେଦାଭେଦ
ବିମଳ ଅନ୍ତରେ ।
ଭୋପେନ ପ୍ରତ୍ୟାଶୀ ଅଳି କି ଅନନ୍ଦ ମନେ
ଗୁଞ୍ଜରି ଗୁଞ୍ଜରି
ବୁଲି ବୁଲି ତୋହସଙ୍ଗେ କରେ ମଧୁପାନ
ଅଧରୁ ତୋହରି ।
ହୃଦଦଣ୍ଡ ପାଇଁ ସିନା ଏ ଦିବ୍ୟ ହସିବେ
ବାଞ୍ଛି ଏ ଭବେ
ନିଷ୍କାମ ସାଧନା ସାଧି କ୍ଷଣିକ ଜୀବନେ
ଚାଲିଯିବୁ ତବେ ।

'କର୍ତ୍ତବ୍ୟ ପରମ' 'କର୍ତ୍ତବ୍ୟ ଧରମ'
'କର୍ତ୍ତବ୍ୟେ ସତତ ଈଶ୍ୱରସତ୍ତା'
ଏ ମନ୍ତ୍ରଭଜିବ ମୋକ୍ଷପ୍ରଦ ପ୍ରବଣେ
ସଦାବେଳେ ହେବୁ କର୍ମପରତା ।
ସ୍ୱଚ୍ଛନ୍ଦ-ପ୍ରୀତ କର୍ତ୍ତବ୍ୟ ବ୍ୟତୀତେ
ନ ଇଚ୍ଛିବି ମୁହିଁ ଅନ୍ୟଧରମେ
'କର୍ତ୍ତବ୍ୟ-ସରଣୀ ସ୍ୱରଗେ ଲାଗିଛି'
ଏହିଭଳି ସଦା ଚିନ୍ତୁ ମରମେ ।

## ଚିନ୍ତୋତ୍ଥି ଭାବ ।

କି କହିବି ଏବେ ଏତ ମହାବିଡମ୍ବନା ?
ଅନ୍ଧକାରେ ପଡ଼ିରହି ଭଗୁଥିଲି ଦିନା :—
କୁଆଡ଼େଗଲା ଏଜୀବନ ତମ ଅନ୍ଧକାରେ
କେତେ ଅଚିନ୍ତିତ କାର୍ଯ୍ୟ ପଡ଼ୁଛି ଯେସାରେ
କେତେ ନୂଆଁ ନୂଆଁ ତତ୍ତ୍ୱ ହେଉଛି ପ୍ରକାଶ
କେତେ ନୂଆଁ ନୂଆଁ ମନ୍ତ୍ର ହେଉଛି ବିକାଶ
କିଛି ନ ଦେଖିଲି ମୁଁ ଯେ କିଛି ନ ଜାଣିଲି,
ଅଖି ଥାଉଁ ଆଉଁ ଯାହା ଅନ୍ଧସମ ହେଲି,
ଭାଗ୍ୟବଳେ କେବେ ହେଲେ ଅଲୋକ ପ୍ରାପତ
କଲେ ଶୀଘ୍ରହୋଇ ବନ୍ଧୁ, କରିବ ଦୀପିତ ।
ନୂଆଁ କଥା ନୂଆଁ ଭାବ ଜଗତେ ପ୍ରଚାରି
ହେବ ଅଲୌକ ଅଧୀର ତେବେ ବାଞ୍ଛାପୂରି ।

କି ଆଶ୍ଚର୍ଯ୍ୟ ! ଆଲୋକର ପ୍ରଥମ ଦର୍ଶନେ
ଦୂର ହୋଇ ଗଲା ମୋର କେତେ ଅଯତନେ,
ବହୁକଷ୍ଟେ ଗଢ଼ିବାକୁ ଯେଉଁ ମୁଁ ସଚେଷ୍ଟ
ଦୁନିଆଁଠି ଗୃହଅଛେ ଦଶଇ ଅସ୍ପଷ୍ଟ ।

*—※—*

(୨)

ଦୁଃଖୀ-ସଂସାରେ ଜନମି ଦୁଃଖେ ପଡ଼ି ପଡ଼ି
ସୁଖର ସ୍ୱପନ ମୁଁ ଯେ ଦେଖେଁ ଘଡ଼ି ଘଡ଼ି
ଫୁଟିଲେ ମୋଭାଗ୍ୟେ କେବେ ସୁଖର-ପସରା
ସୁଖଭୋଗ ନିଜେ ମୁହିଁ 'ନୋଇ ଅମୃତର
ବାଣ୍ଟି ଦେବି ସଂସାରର ଦୁଃଖୀ ଜନ ଆଗେ
ଭୁଲିବେ ଏ ଦୁଃଖଗାଥା ଭୁଞ୍ଜିଣ' ସରାଗେ ,
ପରଦୁଃଖହରା-ବ୍ରତେ ମୁହିଁ ଲାଗିପଡ଼ି
ଜଗତରୁ 'ଦୁଃଖ' ପଦ ଦେବି ବେଗେ ଛଡ଼ି,
କେତେ ସୁଖଭାଗୀ ଜନ ନାହାନ୍ତି ସଂସାରେ
କିନ୍ତୁ ଏ ମୋଭାଗ୍ୟ କେଉଁ ଅଦୃଷ୍ଟଚକ୍ରରେ ?
ଦୁଃଖ-ଖରସ୍ରୋତେ କେଉଁ ଯାଉଥିଲେ ଭାସି
କେବେ କି ଉଦ୍ଧାରେ କେହି ? ଦୟା ପରକାଶି
ଭାଗ୍ୟେ ଯେବେ ବସିଲି ମୁଁ ସୁଖ-ସିଂହାସନେ
ଖୋଜି ନ ପାଇଲି ମାତ୍ର ଦୁଃଖୀ ଗୋଟିଜଣେ ।

(୩)

ସରଳତାଶୋଭେ ଥିଲା ବିମଳ ହୃଦୟ
ଏବେ କପଟେ ହେଲା ମନ ! ଏତେବେଳେ ଉଦ୍ଧତ ,
'ବିଶ୍ୱାସ,' 'ଭକ୍ତି' ଧର୍ମପଥର ସହାୟ
ଦୂରରୁ ଦେଖିଲୁ ତା କରି ଉଚ୍ଛେଦ୍ୟ ,
ଅବାଲ୍ୟ ଅନ୍ତରେ ଯାହା ମଣିଥିଲୁ ସାର
ଏବେ ତ ମଣିଲୁ ତାହା ଘୋର କୁସଂସ୍କାର ,
ତୁଚ୍ଛ ଅନ୍ଧାର ବିହା— ସୁବର୍ଣ୍ଣ ପ୍ରକାଶେ
କୁସଂସ୍କାର ନାମେ କେତେ ସ୍ୱସମାଜ ପାଶେ
ଦେଶକୁଳ ଆଚରିତ ସନାତନଧର୍ମ
ହେଲି ଏହା ଧର୍ମଠାରୁ କିମାକାରଧର୍ମ
ନ ଭଜିଲ 'ଅଲ୍ଲା' କିମ୍ବା ନ ଭଜିଲ 'ଖ୍ରୀଷ୍ଟ'
କି ଭଜିବୁ 'ଜଗନ୍ନାଥେ' ଯନ୍ତ୍ରକେ ସେ କାଷ୍ଠ ?
ପୁରାତନ ଧର୍ମଭକ୍ତି ପରମ ବିଶ୍ୱାସ
ନବଶିକ୍ଷାଲୋକେ ତାହା ମଣିରେ ତାମସ
ଉଠିଦେଲ ହୃଦୟରୁ କେତେ ଶୀଘ୍ରପଦେ
କିନ୍ତୁ କି ନବ ବିଶ୍ୱାସ ଭରିଦେଲ ହୃଦେ ?
ଭରିଦେଲ ମାତ୍ର ନବ ଅବଜ୍ଞାରାଶି
ସେଥିପାଇଁ ଦ୍ୱାରେ କେତେ ହୋଇଗଲ ଦୂଷୀ ,
ଏବେ ତ ଦେଖୁଛି ତୁମ୍ଭ ମୋହିରେ କାହିଁର
ନୂତନ ବା ପୁରାତନ ଦୁଇରୁ ବହୁଦୂର ।
ଏକୂଳ ହେଉଛି, ଏବେ ସେ କୂଳ ନୋହିଲ
କହି ଦଣ୍ଡଅରେ ରହି କି କହିବୁ ଭଲ ?

ଘଣ୍ଟାଉଛନ୍ତି କେତେ ବରଷ ପ୍ରକାଣ୍ଡ ରୁ ପ୍ରଚଣ୍ଡ ଦଣ୍ଡ।
ଥର ଥର ହୋଇ କମ୍ପଇ ଘୋର ଭୀମ ଭ୍ରମରେ
ସରବ ଉତ୍କଳ କମ୍ପାଇ ନଭ କରୁଣସ୍ୱରେ।
'ଅଭାବ' 'ଅଭାବ' ଧ୍ୱନି ତ ସଦା ଶୁଣଇ କର୍ଣ୍ଣ
ଧନ ମାନ ଜ୍ଞାନଗୌରବ ସର୍ବ ଅଭାବପୂର୍ଣ୍ଣ,
କାଳ-ସ୍ରୋତେ ସୁଖଦୁଃଖ ତ ହେବ ଅସଛଭାନି
କିନ୍ତୁ ଏସବୁ କଥା ? ଉତ୍କଳ-ଭାଗ୍ୟ ଦୁଃଖର ଅଂଶୀ।
ଅଭାବେ ପଡିଲେ ମାନବେ ଚେଷ୍ଟେ ଉପାୟଶ୍ରେଣୀ
ଅଭାବଟି ଯେଣୁ ଅଟଇ ଆବିଷ୍କାର-ଜନନୀ,
କେବେ କିପାଁ ସର୍ବ ଉତ୍କଳ ଘୋର ଅଭାବେ ପଡି
ପାଉ ନାହାନ୍ତି ଯତନେ ନିଜ ଉପାୟ ହେତୁ,
ହେଉ ନାହିଁ କିପାଁ ଉଦ୍ଯୋଗ ନବ ଅବିଷ୍କରଣେ
କଳ୍ପନାଙ୍କୁ କିପାଁ ମାନସ ଜ୍ଞାନ ବିଜ୍ଞାନ ହିନେ।
ଶିଳ୍ପ, କୃଷି, ବାଣିଜ୍ୟ ଉନ୍ନତ ଅର୍ଥେ ନବଉପାୟୁ
ହେଉ ନାହିଁ କିପାଁ ଉଦ୍ଭବ ନୂଆ କୌଶଳମୟ।
ଯନ୍ତ୍ର ନାହିଁ କିପାଁ ସ୍ୱଦେଶବାସରେ ସଭାମିତି,
ମିଳୁ ନାହିଁ କିପାଁ ଏକତେ ଯାଇ ଭାବର ମତି।
କେଉଁ ଦୋଷେ ଦୋଷୀ ଅଟଇ ମୋର ଉତ୍କଳମାତା
କେତେ 'ହା' ବତେ ! ଏରୂପେ କରୁଥିବ ଲକ୍ଷ୍ମୀ ଛା,

ଆ॰ନ୍ଦ-ଟୀକିକା ।

(ଶ୍ରୀଗ· ହିଂହିହ୍-ଗୁଣଗାନି)

ଦେବଭୂଦେର୍ ଆର୍ଯ  ଛନ୍ଦ ମହାପାତ୍ର

